ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ଯାଇ ପାରୁଥିବା ଶକ୍ତି।

**ଲକ୍ଷିତ** - ଦେଖାଯାଇଥିବା, ପରିଦୃଷ୍ଟ।

**ଲାଞ୍ଛନ** - ଚିହ୍ନ, କୃଷ୍ଣନାମାଙ୍କିତ ନାମାବଳୀ ନାମକ ଉତ୍ତରୀୟ।

**ଲିଙ୍ଗଶରୀର** - ପଞ୍ଚଭୂତ, ଦଶଇନ୍ଦ୍ରିୟ ତଥା ମନଯୁକ୍ତ ଶରୀର।

**ଲୁବ୍ଧକ** - ଲୋଭୀ, ବ୍ୟାଧ, ଚଢ଼େଇଆ।

**ଲୋଳ** - ଚଞ୍ଚଳ, ଢିଲା, ଶିଥିଳ।

**ଶଉଚ** - ପବିତ୍ରତା।

**ଶକଟା** - ଏକ ପ୍ରକାର ଜୁଆ ଖେଳ।

**ଶଚୀପତି** - ଇନ୍ଦ୍ର।

**ଶୟଳ** - ପୃଥିବୀ।

**ଶରଣସୋଦର** - ଶରଣାଗତ ଲୋକର ଭାଇ ପରି ରକ୍ଷାକାରୀ।

**ଶଶାଙ୍କ** - ଚନ୍ଦ୍ରମା, କର୍ପୂର।

**ଶିଖାମନ୍ତ୍ର** - ଓଁକାର।

**ଶିଶ୍ନୋଦର** - ଲିଙ୍ଗ ଓ ପେଟ, ମୈଥୁନ ଅଭିଳାଷୀ, ଆହାରଲୋଭୀ।

**ଶୀଳ** - ସତ୍ ସ୍ୱଭାବ।

**ଶୁକ୍ତି** - ଶାମୁକା।

**ଶୁଷ୍କଗୋମୟ** - ଶୁଖିଲା ଗୋବର।

**ଶେଷ** - ଅନନ୍ତ, ସହସ୍ର ଫଣାଧାରୀ ନାଗ।

**ଶ୍ରୀମଦ** - ଧନଗର୍ବ, ରୂପଗର୍ବ ଓ ଜନଗର୍ବ।

**ଶ୍ରୁତିପୀରତି** - କାନକୁ ଭଲ ଲାଗୁଥିବା।

**ଷଡ଼୍‌ଅରୀ** - କାମ, କ୍ରୋଧ, ଲୋଭ, ମୋହ, ଗର୍ବ, ପରଶ୍ରୀକାତର ଆଦି ଛଅଗୋଟି ଶତ୍ରୁ।

**ଷଡ଼୍‌ଐଶ୍ୱର୍ଯ୍ୟ** - ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଲକ୍ଷ୍ମୀ, ଜ୍ଞାନ, ବୈରାଗ୍ୟ।

**ସକୃତ୍** - ଏକବାର।

**ସପତଗଣ** - ସାତଗୋଟି ଅଶ୍ୱରୂପୀ ଗଣ, ସୂର୍ଯ୍ୟଙ୍କ ରଥରେ ସାତଗୋଟି ଅଶ୍ୱ ଥାଆନ୍ତି।

**ସନ୍ଦୀପନ** - ପ୍ରଜ୍ୱଳିତ କରାଇବା, ଜଳାଇବା ବୃଦ୍ଧି କରିବା।

**ସନ୍ନିଧାନ** - ନିକଟ।

**ସମାନଭୂତି** - ବିଷ୍ଣୁଙ୍କ ସହିତ ସକଳ ଐଶ୍ୱର୍ଯ୍ୟ ଭୋଗ କରି, ବୈକୁଣ୍ଠରେ ବସିବା ଭଳି ସମ୍ପଦ।

**ସମିଧ** - ହୋମନିମିତ୍ତ ସଂଗୃହୀତ କାଠ।

**ସମ୍ଭ୍ରମ** - ସମ୍ମାନ ଦେଖାଇବାର ବ୍ୟଗ୍ରତା।

**ସାରଣୀ** - ଖେଳନା ବିଶେଷ,

କନ୍ଦୁକ, ପେଣ୍ଡୁ।

**ସାରୂପ୍ୟ ମୁକ୍ତି** - ବିଷ୍ଣୁଙ୍କ ସ୍ୱରୂପ ଧାରଣ କରି ବୈକୁଣ୍ଠରେ ରହିବା।

**ସାଲୋକ୍ୟ ମୁକ୍ତି** - ବିଷ୍ଣୁଙ୍କ ସହିତ ବୈକୁଣ୍ଠ ଲୋକରେ ରହି ମୋକ୍ଷ ଲାଭ କରିବା।

**ସାଂଖ୍ୟଯୋଗ** - କର୍ମଯୋଗ, କପିଳମହର୍ଷିଙ୍କ ପ୍ରବର୍ତ୍ତିତ ଯୋଗଶାସ୍ତ୍ର, ତୃତୀୟ ସ୍କନ୍ଧରେ ବର୍ଣ୍ଣିତ ଈଶ୍ୱର ତତ୍ତ୍ୱ।

**ସୁକଲ୍ୟ** - ଅନ୍ୟକୁ ବୁଝାଇବାରେ ଦକ୍ଷ।

**ସୁନାସୀର** - ଇନ୍ଦ୍ର।

**ସୁପର୍ଣ୍ଣ** - ଗରୁଡ଼।

**ସୁମତି** - ଭଲବୁଦ୍ଧି।

**ସୁରନଦୀ** - ଦେବନଦୀ ଗଙ୍ଗା।

**ସୁରଭୀପୁର** - ଗୋସ୍ଥାନ, ଗୋଶାଳା।

**ସୁରେନ୍ଦ୍ର** - ଦେବରାଜ ଇନ୍ଦ୍ର।

**ସୁଷୁପ୍ତି** - ନିଦ୍ରା, ଶୟନ।

**ସୂପ** - ଡ଼ାଲିଜାତୀୟ ଝୋଳ, ପାୟସ, ଅନ୍ୟାନ୍ୟ ଝୋଳ।

**ସ୍ୱନ** - ଶବ୍ଦ, ଧ୍ୱନି।

**ସ୍ତୋକ** - ଅଳ୍ପ।

**ସ୍ଥଇର୍ଯ୍ୟ** - ସ୍ଥୈର୍ଯ୍ୟ, ସ୍ଥିରତା।

**ସ୍ଥଣ୍ଡିଳ** - ମନ୍ତ୍ରଦ୍ୱାରା ସଂସ୍କାର କରାଯାଇଥିବା ବେଦୀ ସଦୃଶ ଭୂମି।

**ହବି** - ଘିଅ।

**ହଳପାଣି** - ବଳରାମ।

**ହଂସଦ୍ୱଇ** - ଜୀବ ଓ ପରମ, ଜୀବାତ୍ମା ଓ ପରମାତ୍ମା।

**ହିମାଳ** - ହିମାଳୟ ଶବ୍ଦର ସଂକ୍ଷିପ୍ତ ରୂପ।

**ହୁତାଶନ** - ଅଗ୍ନି, ନିଆଁ।

**ହେଠମାଥ** - ତଳକୁ ମୁହଁ କରିବା।

**ହେତୁ** - କାରଣ।

**ହେଳେ** - ସହଜରେ।